# ଜାନକୀ ବିଳାପ ।

---

ଶ୍ରୀ ଗଦାଧର ସାହୁଙ୍କ ଦ୍ୱାରା ରଚିତ

ତାହାଙ୍କ ଜ୍ୟେଷ୍ଠପୁତ୍ର

ଶ୍ରୀ ନବୀନ ସାହୁଙ୍କ ଦ୍ୱାରା

ସପ୍ତମବାର ପ୍ରକାଶିତ ।



Printed by H. M. Dutta
at the Dutta Press
Cuttack,
1929.

ମୂଲ୍ୟ ଦୁଇପଇସା ମାତ୍ର ।

# ଜାନକୀ ବିଳାପ ।



( ରାଗ—ଚନ୍ଦ୍ରାଦେଶାଖ । )

ମହାଦୁଃଖରେ ଅଶୋକବନେ । ବସି ଜାନକୀ ଭାବନ୍ତି ମନେ ।
ଅସୁର ପୁରେ ବନ୍ଦୀ ହୋଇ ରହିଲି । ରାମ ନାମ ଗୁଣ ସ୍ମରି ମନେ
ହେ । ଦଇବ । ୧ । ଜନ୍ମକାଳରୁ ମିଥିଳାପୁରେ । ସୁଖେ ବଢ଼ିଲି
ପିତାଗୃହରେ । ଋଷିନନ୍ଦନୀଙ୍କ ସଙ୍ଗେ ଖେଳୁଥିଲି । ଦୁଃଖ ସହୁ ନ
ଥିଲି ଦେହରେ ହେ । ଦଇବ । ୨ । ବିଭା ହୋଇ ଅଯୋଧ୍ୟା ଆଇଲି ।
ପତି ସଙ୍ଗରେ ସୁଖେ ବଞ୍ଚିଲି । ରାମ ଅଭିଷେକେ କୈକେୟୀ ଜନନୀ ।
ବାଧା ଦେଲା କେଉଁ ଦୋଷ କଲି ରେ । ଦଇବ । ୩ । ଆମ୍ଭମାନଙ୍କୁ
ବନେ ପେଶିଲା । ତହୁଁ କେଉଁ ସୁଖ ଭୋଗ କଲା । ରାଜା ମୃତ୍ୟୁ ହେଲା
ଦଇବ ଲେଖନେ । ଗୃହେ ବିଧବା ହୋଇ ରହିଲା ସେ । କୈକେୟୀ ।
ପିତା ସତ୍ୟେ ବନକୁ ଗମନ । କଲେ ଆମ୍ଭର ରାମରାଜନ । ଲକ୍ଷ୍ମଣ
ସହିତେ ଆମ୍ଭେ ତିନି ପ୍ରାଣୀ । ବନେ ପଶିଥିଲୁ ତିନିଜଣ ହେ ।
ବିଧାତା । ୪ । ମୁଁ ଯେ ଅଯୋଧ୍ୟାର ପାଟରାଣୀ । ଅଟେଁ ରାମଚନ୍ଦ୍ରଙ୍କ
ଘରଣୀ । ଦାରୁଣ ଦଇବ ଭାଲେ ଲେଖିଥିଲା । ତେଣୁ ହୋଇଲି
ଦୁଃଖ କାରିଣୀ ହେ । ଦଇବ । ୫ । ମୋତେ ଅଣୁ ନ ଥିଲେ ମୋ
ପତି । ବନେ ପଡ଼ିବ ବହୁ ବିପତ୍ତି । ବୋଲ ନ ଶୁଣି ମୁଁ ଆଇଲି
ସଙ୍ଗତେ । ମୋତେ ପଡ଼ିଲା ତେଣୁ ଦୁର୍ଗତି ହେ । ବିଧାତା । ୬ ।
ଆମ୍ଭ ନାମନ୍ତେ ଆମ୍ଭର ପତି । ପାଉଥିବେ ବନେ ଦୁଃଖ ଅତି । ମୋତେ
ନ ଦେଖି ବିକଳ ହେଉଥିବେ । ବୋଧ କରୁଥିବେ ସଉମିତ୍ରୀ ସେ ।

ସାନୁଜ । ୮ । ବନବାସ କଷ୍ଟ ଦୁଃଖମାନ । ଭୋଗ କରୁଥିବେ ବେନ-ଜନ । ଦଇବ ଦାରୁଣ ମୋହର ମରଣ । ହେଲେ ହୁଅନ୍ତା ସବୁ କାରଣ ହେ । ଦଇବ । ୯ । ପଞ୍ଚସଙ୍ଗୁ ଅନ୍ତର ହେବାର । ନାରୀ-ମାନଙ୍କ ନୁହେ ବେଭାର । ବଞ୍ଚିବା ମରିବା ସମାନ ଅଟଇ । ତାଙ୍କ ସାହା ହୋଇବେ ଈଶ୍ୱର ହେ । ଦଇବ । ୧୦ । ମୋତେ ହେମ କୁରଙ୍ଗୀ ଦେଖାଇ । ଯତିରୂପେ ଭିକ୍ଷା ଅର୍ଥେ ଯାଇଁ । କପଟ ଯୋଗୀ ମୋ ହସ୍ତକୁ ଧଇଲା । ଶୀଘ୍ରେ ଆଣିଲା ରଥେ ବସାଇ ସେ । ଦନୁଜ । ଅଗ୍ନି ତୋତେ ରଖିବାକୁ ଚତୁ । କାଳସର୍ପ ମୁଖେ ଦେଇ ହସ୍ତ । ଅଲପ ଜନରେ ମରିବ ଅତ୍ରି । ଗଦାଧର ହୋଇ ବ୍ୟାକୁଳିତ ସେ । କହଇ । ୧୨ ।

---

ରୋଦନ ।

ଝୃଟସ୍ୱରେ କାନ୍ଦେ ରାମରାଣୀ ହେ । ରଘୁମଣି । ଲଙ୍କାପୁରେ ଜନକ ଦୁଲଣୀ ହେ । ରଘୁମଣି । ଘୋଷା । ଜନକରାଜା ଦୁହିତା ହୋଇ ଅମ୍ଭେ ରାଜସୁତା । ଏବେ ଦୁଃଖ ଦେଲା ବହୁ ଥଣ ହେ । ରଘୁମଣି । ହୋଇଲି ମୁଁ ଯୂଥଭ୍ରଷ୍ଟା ଏଣୀ ହେ । ରଘୁମଣି । ୧ । ରୋଦନ କରନ୍ତି ସୀତା । ରାମଙ୍କୁ କରନ୍ତି ଚିନ୍ତା । ଲକ୍ଷ୍ମଣଙ୍କ ଗୁଣମାନ ଗୁଣି ହେ । ରଘୁମଣି । ବନ୍ଦୀ ହେଲା ପ୍ରାଣେଶ ଘରଣୀ ହେ । ରଘୁମଣି ॥ ମିଥିଳାରେ ସ୍ୱୟମ୍ବର । କରିଥିଲେ ପିତା ମୋର । ଲକ୍ଷେ ନୃପ ଥିଲେକ ବରଣି ହେ । ରଘୁମଣି । ଧନୁ ଭଗ୍ନ କଲେ ସେହୁଯଣି ହେ । ରଘୁମଣି ॥ ଅମ୍ଭଙ୍କ ବିଭା ହୋଇଲ । ଅଯୋଧ୍ୟାକୁ ଘେନି ଗଲ । ମହାସୁଖେ ବସୁ ବେନି ପ୍ରାଣୀ ହେ । ରଘୁମଣି । ଲକ୍ଷେ ରାଜାଘରେ ଶିରୋମଣି ହେ । ରଘୁମଣି । ୪ । ଧାର୍ମିକପଣେ ତୁମ୍ଭର । ଦେଖି ତୋଷ ଦଣ୍ଡଧର । ରାଜ୍ୟକୁ ହେବ କାରେଣି ହେ । ରଘୁମଣି । ତୁମ୍ଭ ଅଭିଷେକ ନୃପମଣି ହେ ।

ରଘୁମଣି । ୫ । ସାବତ ମାତା କୈକେୟୀ । ଅମ୍ଭ ପ୍ରତି ଛନ୍ଦ କହୁ । ନୃପେ ସତ୍ୟ କରାଇ ତରୁଣୀ ହେ । ରଘୁମଣି । ରାଜ୍ୟ ଭରତ ହେବ ନୃପମଣି ହେ । ରଘୁମଣି । ୬ । ରାଜାଙ୍କୁ ସତ୍ୟ କରାଇ । ରାମ ବନ ଯିବାପାଇଁ । ଦୁଃଖ ଦେଲା କୈକେୟୀ ତରୁଣୀ ହେ । ରଘୁମଣି । କାନ୍ଦୁଥିବେ କଉଶଲ୍ୟା ରାଣୀ ହେ । ରଘୁମଣି । ୭ । ପିତା ସତ୍ୟ ନ ଲଙ୍ଘିଲ । ତୁମ୍ଭେ ବନକୁ ଅଇଲ । ଲକ୍ଷ୍ମଣ ସହିତେ ଜନ ପ୍ରାଣୀ ହେ । ରଘୁମଣି । ସୁଖେ କଲ ଅରଣ୍ୟେ ଭ୍ରମଣି ହେ । ରଘୁମଣି । ୮ । ଏବେ ଦ୍ୱନ୍ଦ ଘଟଇଲେ । ନୃପେ ପ୍ରାଣ ତେଜିଲେ । ବିଧବା ହୁଏ କୈକେୟୀ ରାଣୀ ସେ । ପାଟରାଣୀ । କଉଶଲ୍ୟା ଆଦି ସର୍ବ ରାଣୀ ହେ । ରଘୁମଣି । ୯ । ଯତିବେଶେ ବନବାସ । ଜଟାଜୁଟ ବାନ୍ଧି କେଶ ପଥରେ ବେଷ୍ଟିଲ୍ଲ ଶବରଣୀ ସେ । ରଘୁମଣି । ଫଳମୂଳ ସ୍ନେହେ ଦେଲା ଅଣି ହେ । ରଘୁମଣି । ୧୦ । ଅଯୋଧ୍ୟା ପୁରକୁ ଭୁଲି । ତୁମ୍ଭ ସଙ୍ଗେ ବନେ ବୁଲି । ସେ ଦୁଃଖକୁ ନ କରି ଗ୍ଲଲେଣି ହେ । ରଘୁମଣି । ଭୁଞ୍ଜୁ-ଥିଲୁଁ ଫଳ ମୂଳ ଅଣି ହେ । ରଘୁମଣି । ୧୧ । ଦଇବ ବିପକ୍ଷ ହେଲା । ବନବାସ କର୍ମେ ଥିଲା । ଲୋଭ କଲି ଦେଖିଣ ମୃଗୁଣୀ ହେ । ରଘୁ-ମଣି । ଝୁରି ଝୁରି ନେଇ ବନେ ପାଣି ହେ । ରଘୁମଣି । ୧୨ । ମୃଗ ମାରିବାର ପାଇଁ । ତୁମ୍ଭଙ୍କୁ କହିଲି ମୁହିଁ । ବୋଲ ନ ଲଙ୍ଘି କୋଦଣ୍ଡ-ପାଣି ହେ । ରଘୁମଣି । ମୃଗ ମାରି ଗଲ ସେହିକ୍ଷଣି ହେ । ରଘୁମଣି । ଲକ୍ଷ୍ମଣଙ୍କୁ ଜଗାଇଲ । ତୁମ୍ଭେ ମୃଗ ମାରି ଗଲ । ତାହିଁ ଗଲ ଅମ୍ଭେ ତ ନ ଜାଣି ହେ । ରଘୁମଣି । ଲକ୍ଷ୍ମଣ ଡାହୁ ଶବଦ ଶୁଣି ହେ । ରଘୁମଣି । ଉପର ହେବ ବର୍ଣ୍ଣନ । ବ୍ୟାକୁଳିତ ରାଘବନ । ଚତ୍ର ହେଉଥିଲୁ ସୁଣ ମଣି ହେ । ରଘୁମଣି । ଗୀତେ ଏହା ଗଦାଧର ଭଣି ହେ । ରଘୁମଣି । ୧୫ ।

—( ସମାପ୍ତ । )—

କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେଷସଙ୍କ୍ରାନ୍ତେ ମୁଦ୍ରିତ । ୧୯୨୯

# ସୁଦାମଚରଣ ପୁସ୍ତକାଳୟ ।

ଏହି ଦୋକାନରେ ନାନାପ୍ରକାର ପୁସ୍ତକ କାବ୍ୟ, ନାଟକ, ପୁରାଣ, ଗଦ୍ୟ, ପ୍ରହସନ, ଜ୍ୟୋତିଷ, ବୈଦ୍ୟକ, ଡାକ୍ତରୀ, ହୋମିଓପ୍ୟାଥିକ ଓ ସମସ୍ତ ପ୍ରାଇମେରୀଠାରୁ ମାଇନର ସ୍କୁଲମାନଙ୍କରେ ପ୍ରଚଳିତ ସମସ୍ତ ପୁସ୍ତକ ସୁଲଭ ମୂଲ୍ୟରେ ମିଳେ । ଏହା ବ୍ୟତୀତ ସମସ୍ତ ଷ୍ଟେସନାରୀ ଜିନିଷମାନ ଅନେକ ପ୍ରକାର ଶାଢ଼ି, ଧଡ଼ି, ପାଟ, ଧୋତି, ଗାମୁଛା, କୋଟ, କାମିଜ, ଗେଞ୍ଜି, ମୋଜା, ଜୋତା, ଟୋପି, ଶାଲ, ଶାବନ, ଅଲ୍‌ଷ୍ଟର, ମସଲିନ ଓ ନାନାପ୍ରକାର କୁରୁଛାଉଣୀ ମିଳେ ଏବଂ ସମସ୍ତ ପ୍ରକାର ସାବୁନ ଓ ତେଲ ଲେଭେଣ୍ଡର, ଅତର, ବନ୍ଧୁ ଓଭରକୋଟ, ଚୁଡ଼ି, ସୁନା, ରୁପାର ଅନେକ ପ୍ରକାର ଚାଳକଟି ଜିନିଷ ଓ ହାର, ଖଡ଼ୁ, ମୁଦି, ଚୁଡ଼ି, , ବାଜୁ, ନାକଫୁଲ, ଗଣ୍ଠିଆ, ପାହୁଡ଼ ଜୋଡ଼, ମୁଣ୍ଡର ଅଳଙ୍କାର ଇତ୍ୟାଦି ଜିନିଷମାନ ମିଳେ । ପାଠ୍‌ବାଳକ-ଙ୍କର ପୋଷାକ ମଧ୍ୟ ମିଳେ । କୌଣସି ଜିନିଷ ଆବଶ୍ୟକ ହେଲେ ଆପଣ ପତ୍ର ଲେଖିଲେ ଆମ୍ଭେ ସେ ସମସ୍ତ ଜିନିଷ ଭିଃ ପିଃ ଦ୍ୱାରା ପଠାଉ, ପସନ୍ଦ ନ ହେଲେ ଫେରସ୍ତ ନେଉ । ଅର୍ଡ଼ର ପାଇଲେ ଅତିଶୀଘ୍ର ମାଲ ପଠାଉ । ଆପଣମାନଙ୍କର ନାମ, ଧାମ ଓ ପୋଷ୍ଟଅଫିସ ଲେଖିବେ ।

ପ୍ରକାଶ ଥାଉକି ଏଠାରେ ମକରଧ୍ୱଜ, ଶ୍ରୀକର୍ପୂର ଓ ସୁରୁଙ୍ଗ କାମ୍ରାନବେଶର; ଯାଦୁ, କାହ୍ନୁ, କନ୍ଧା, ମଇଳା ବଳୀ ପ୍ରଭୃତି ମଲ୍ଲ ମିଳେ । ଦକ୍ଷିଣ ପାଚକ ମିଳେ ।

ପ୍ରାପ୍ତି ସ୍ଥାନ ।

| | | |
|---|---|---|
| ସୁଦାମଚରଣ ପୁସ୍ତକାଳୟ<br>ବାଲୁବଜାର,<br>ପୋଃ ଅଃ ଚାନ୍ଦନୀଚୌକ, କଟକ | } | ଶ୍ରୀକୃଷ୍ଣଚନ୍ଦ୍ର ସାହୁ<br><br>ପ୍ରୋପ୍ରାଇଟର |